# ମଙ୍ଗଳାଚରଣ

**ଦ୍ୟୁଲୋକେ ଦେବତାଃ ସନ୍ତି**
**ପ୍ରାଣିନଃ ମର୍ତ୍ତ୍ୟମଣ୍ଡଳେ**
**ତ୍ରିଶଙ୍କୁଃ ତିଷ୍ଠତି ମଧ୍ୟେ**
**ସର୍ବଲୋକେଷୁ ଗର୍ଦ୍ଧଭାଃ । 1**
**ବାଣୀପୁତ୍ର ୨୦୨୧୦୬୨୮**

**ଏକୈକମସ୍ତି ମସ୍ତିଷ୍କଂ**
**ସଂଗ୍ରହାୟ ଶିରେ ଶିରେ**
**ବୁଧୈସ୍ତତ୍ର ଧୃତା ବିଦ୍ୟା**
**ମୂର୍ଦ୍ଧୈର୍ବା ଗୋବରସ୍ତୁପମ୍ । 2**
ବାଣୀପୁତ୍ର ୨୦୨୧୦୬୨୯
**ଇତି ମଙ୍ଗଳାଚରଣ ସମାପ୍ତ**

ଅର୍ଥାତ୍:
ସ୍ୱର୍ଗରେ ଦେବତା, ମର୍ତ୍ତ୍ୟରେ ମନୁଷ୍ୟ ଓ ପାତାଳରେ ରାକ୍ଷସ ଥିଲେ ହେଁ ଗଧ ସର୍ବତ୍ର ଥାନ୍ତି ‖ 1‖
ସଂରକ୍ଷଣ ନିମିତ୍ତ ପ୍ରତି ମସ୍ତକରେ ଗୋଟିଏ ଲେଖା ମସ୍ତିଷ୍କ ଅଛି । ତହିଁରେ ବୁଦ୍ଧିମାନ୍ ବିଦ୍ୟା ଓ ନିର୍ବୋଧ ଜନ କୁଢ କୁଢ ଗୋବର ସଂରକ୍ଷଣ କରନ୍ତି ‖ 2‖

## ବାଣୀପୁତ୍ର ଶିକ୍ଷାସାର

ମୂର୍ଖ ଦରିଦ୍ର ଓ ନାରାୟଣ:-
ଦରିଦ୍ର ଘଟେ ନାରୟଣ
ଥିବା ନଥିବା ଅକାରଣ ll   ୧
ମୂର୍ଖଠି ନାରାୟଣ ଥାଇ
ବୁଦ୍ଧି ନ ହୁଏ ଲାଭ ନାହିଁ ll  ୨

# ଦୁର୍ନୀତର କ୍ଷେତ୍ରଭେଦ

**ଆରକ୍ଷୀ ଦୁର୍ନିତୀ:-**
ନୀତିଶୃଙ୍ଖଳା ରକ୍ଷାକାରୀ
ସାଜିଲେ ବିଧାନସଂହାରୀ । ୩
ସେହି ଦେଶର ନରନାରୀ
କି ଭାବେ ହେବେ ସଦାଚାରୀ । ୪
ତେଣୁ ଆରକ୍ଷୀ ବୀରବର
ନ କର ଜମା ମାର ଧର । ୫
ଦିଅ ନା ଜନେ ଏହି ଶିକ୍ଷା:
"ବିଧିଲଙ୍ଘନ ମହାଦୀକ୍ଷା ll" ୬

**ନାଗରିକ ଦୁର୍ନୀତି:-**
ପିଟାମରାକୁ ପରଶଂସା
ନୁହଁ କେବଳ ଲୋକହସା । ୭
ଜନସେବକେ କୃତ୍ୟ ଭିନ୍ନ
ଅନ୍ୟତ୍ର ଦେଲେ ଦିଗ୍ଦର୍ଶନ  । ୮
ଜନସେବକ= public servant; କୃତ୍ୟ= duty;

ସେ ମଧ୍ୟ ମହା ଅପରାଧ
ଏ ଥିରେ ନାହିଁ ବିସମ୍ବାଦ । ୯
ଅଳପ ଜାଣି ବହୁ କଥା
ନ କହ ନ ପଢି ସଂହିତା ॥ ୧୦

ଦୃଷ୍ଟି ବିଚାର ତିନି ଶ୍ରେଣୀ:-
ଉତ୍ତମ ଦେଖେ ନିଜ ନେତ୍ରେ
ମଧ୍ୟମ ଦର୍ଶାଇବା ମାତ୍ରେ । ୧୧
ଅଧମ ଦେଖି ଦେଖେ ନାହିଁ,
ତା ନେତ୍ରେ ଆଙ୍ଗୁଳି କି ପାଇଁ ॥ ୧୨

**ଭଣ୍ଡଗୁରୁ ଧଣ୍ଡଶିଷ୍ୟ:-**
ଭଣ୍ଡ ଗୁରୁକୁ ଧଣ୍ଡ ଭକ୍ତ
ଏକ ଆନଠି ସମାସକ୍ତ ॥ ୧୩

ବାବାଜୀ କିଏ କି କାରଣେ:-
ବାବାଜୀ ଚାରିଟି ପ୍ରକାରେ
ଉତ୍ପନ୍ନ ହୁଅନ୍ତି ସଂସାରେ । ୧୪
ଅତ୍ୟନ୍ତ ବାସ୍ତବେ (୧) ଅନ୍ତରୁ
ହୁଅନ୍ତି ବୈରାଗ୍ୟ ଭାବରୁ । ୧୫
ଦ୍ବିତୀୟ (୨) କାନ୍ତାରୁ ବାବାଜୀ,
ନ ପାଇ ଖାଦ୍ୟପେୟ ରାଜି । ୧୬
ତୃତୀୟଟି (୩) ମଣିଷମାରୁ,
ଆରକ୍ଷୀ ଦଳ ଖୋଜିବାରୁ । ୧୭
ବୃ୍ୟଦ୍ଧ= criminal;

(୪) ଟିଙ୍ଗଟିଙ୍ଗାରୁ ଚତୁର୍ଥରେ
ଗୃହଭର୍ତ୍ସନେ କ୍ରୋଧଭରେ ॥୧୮
ଭର୍ତ୍ସନେ= on being scolded;

**କରୋନା ବ୍ୟାଧି:-**
ବଞ୍ଚନାପୂରିତଜଗତେ
କରୋନା ହେଲା ନାନା ମତେ । ୧୯
ଶବ୍ଦରୁ ସ୍ପର୍ଶରୂପରସ
ଗନ୍ଧରେ କରୋନାର ହସ ॥ ୨୦

**ମାନପତ୍ର ବ୍ୟବସାୟ:-**
ସମ୍ମାନ କିଣି ଅର୍ଥ ବଳେ
ଯେତେ ଭାଷିଲେ ମଞ୍ଚସ୍ଥଳେ । ୨୧
ଛବି ଉଠାଇ ଦେଲେ ଛାପି
ଜନେ ଦେଖିବେ ହସ ଚାପି । ୨୨
କି ତହୁଁ ହେବ ଯଶଭୂଷ
ଆତ୍ମା କହିବ ଅମନୁଷ୍ୟ ॥ ୨୩

**ସେବାକାରୀ ଦୁର୍ନୀତି:-**
ଶୀତପ୍ରକୋଷ୍ଠେ ବସି ବସି
ମିଷ୍ଟକଥନେ ହସି ହସି । ୨୪
କର୍ମଶାଳାରେ ଟଙ୍କା ଖାଇ
ଭାଷଣ ଦେଲେ ବରଷାଇ ।୨୫
କି ବା ଶିଖିବ ବଂଶଜନ
ଶିକ୍ଷା ତ ଦେବ ଆଚରଣ । ୨୬

ନିଶ୍ଚୟ ଦିନେ ହେବ ସିଏ

ମଧୁରଭାଷୀ ଚୋରଟିଏ ll ୨୬

**ବ୍ୟବସାୟୀ ଦୁର୍ନୀତି:-**

ବ୍ୟବସାୟରେ ଠକି ଭଣ୍ଡି

ଫୁଲାଅ ଯେତେ ନିଜ ଗଣ୍ଡି l ୩୭

ଶରୀରସ୍ଥ ସେ ନରରକ୍ତ

ନିଦ୍ରାରେ କରିବ ବିରକ୍ତ ll ୩୮

**ଗୋପାଳ ଦୁର୍ନୀତି:-**

ଦୁଗ୍ଧରେ ମିଶାଇ ସଲିଳ

ଶିଶୁଙ୍କୁ ଦହି ତିଳ ତିଳ l ୩୯

ଅର୍ଜିଲେ ଧନ ଗୌଡ ଭାଇ,

ପାପ ଭୁଞ୍ଜିବ ପୁଣ୍ୟ ନାହିଁ ll ୪୦

**କୃଷକ ଦୁର୍ନୀତି:-**

ଫେରାଇ ଦରିଦ୍ର ଗ୍ରାହକେ

କୁର୍ବାଣେ ବିକି ଏକା ଥୋକେ l ୪୧

କୁର୍ବାଣ= agent or dalal;

ଅର୍ଜିଲେ ଚାଷୀ ବେଶି ଧନ

ପାପରେ ପୂରିବ ସଦନ ll ୪୨

**ଯାନଚାଳ ଦୁର୍ନୀତି:-**

ଯାନ ଉଦ୍ଧାର୍ଯ୍ୟ ହେଲା କହି,

ପ୍ରଯୋକ୍ତେ ଠକାଇ ଭଣ୍ଡାଇ l୪୩

ମିଥ୍ୟା ଇନ୍ଧନ ମୂଲ୍ୟ ମାଗି
ଚାଳକେ ହେବ ପାପଭାଗୀ ॥ ୪୪
ଉଦ୍ଧାର୍ଯ୍ୟ= repair; ପ୍ରଯୋକ୍ତା= mployer;
ସେବାର ପୂର୍ଣ୍ଣ ମୂଲ୍ୟ ନେଇ
ଫାଙ୍କିଲେ କର୍ମଚାରୀ ଭାଇ । ୪୫

**କର୍ମୀବର୍ଗ ଦୁର୍ନୀତି:-**
ନ ଆସି ନିଜ କର୍ମସ୍ଥାନେ
ସନ୍ତକ କଲେ ଉପସ୍ଥାନେ । ୪୬
ସେ ନୁହେଁ ସୁନାଗରିକତା
ଦୁର୍ନୀତି ବୋଲି ଜାଣିବ ତା ॥ ୪୭

ମୂର୍ଖକୁ ସୁରକ୍ଷାଭାର:-
ମର୍କଟ ଭୃତ୍ୟେ ଖଡ୍ଗ ଦେଇ,
ରାଜା ଶୋଇଲେ ଶଯ୍ୟା ଫେଇ । ୪୮
ମାଛିଟେ ଶ୍ରୀଅଙ୍ଗେ ବସିଲା,
ମର୍କଟ ଖଡ୍ଗେ ପ୍ରହାରିଲା । ୪୯
ତତ୍କାଳ ମାଛି ଗଲା ଉଡି,
ରାଜନ ମଲେ ରକ୍ତେ ବୁଡି । ୫୦
ମୂର୍ଖକୁ ଦେଇ ରକ୍ଷାଭାର
ନିଶ୍ଚିନ୍ତ ହେଲେ ମୃତ୍ୟୁ ସାର ॥ ୫୧

**ସମ୍ପର୍କ ବିଘଟନ:-**
ବୟସ ଥାଉଁ ହୁଏ ବୁଢା
ସ୍ୱାର୍ଥାନ୍ତେ ସମ୍ପର୍କ ବାପୁଡା । ୫୨
ଏଣୁ ବରଜି ସ୍ୱାର୍ଥୀ ଜନେ

ରୁହ ସଂସାରଘନବନେ ॥ ୫୩

ଆଇନପାଠରେ ଫେଲ:-
ବେଲ୍.ପାଠ୍ୟରେ  ଫେଲ୍ ଛାତ୍ର
କଳଙ୍କ ବିଦ୍ୟାଙ୍ଗନେ ମାତ୍ର ॥ ୫୪
ବେଲ୍.ପାଠ୍ୟ= law study; ବିଦ୍ୟାଙ୍ଗନ= place of study;

ଧର୍ମନାମରେ ଭଣ୍ଡାମି (୧):-
ସବୁ କି କରେ ଆନ କେହି ?
ଆମେ ନିକମ୍ମା ନରଦେହୀ ? ୫୫
ଏମନ୍ତ କହି ନ ଠକିବ,
ବିବେକୀ କେହି ପରଖିବ: ୫୬
ଯଦି ମୁଁ ଅକର୍ମା ନିର୍ବଳ
କିଆଁ ଭୋଗିବି କର୍ମଫଳ । ୫୭
ଯେ କରୁଅଛି ସବୁ କର୍ମ
ଫଳ ସେ ଭୋଗୁ *- ଏହି ଧର୍ମ । ୫୮
ବେଦ ବେଦାନ୍ତ ଧର୍ମଗ୍ରନ୍ଥ
କହନ୍ତି କର୍ମଫଳ ସତ୍ୟ । ୫୯
ମୁଁ ବି କରୁଛି ନିଶ୍ଚେ କିଛି
ବୋଲି ତ କର୍ମଫଳ ଅଛି । ୬୦

ଯା ଭାବି ଜୁହାରିବ ଦୂରୁ
ଜାଣି ତୁମ୍ଭଙ୍କୁ ଭଣ୍ଡ ଗୁରୁ ॥ ୬୧

ଧର୍ମନାମରେ ଭଣ୍ଡାମି (୨):-
ନିରୁପସ୍କର ରନ୍ଧାଶାଳ

ଅନ୍ନ ବିହୁନେ ଥିବ ଥାଳ । ୬୨
ଉପସ୍କର= ମହଲା, ଆସବାବ;
ନଥିବେ ପରଶିବା ନର
ବିଶ୍ୱାସେ ପୂରିବ ଉଦର । ୬୩
ତର୍କୀଠୁ ଖାଦ୍ୟ ବହୁ ଦୂର
ବିଶ୍ୱାସେ ସୁଖାଦ୍ୟ ପ୍ରଚୁର - ୬୪
ଏମନ୍ତ ଶାଠ୍ୟର ବଚନ
କହି ନ କର ପ୍ରବଞ୍ଚନ । ୬୫
ଏ ସବୁ ନାହିଁ ଧର୍ମଗ୍ରନ୍ଥେ
ତୁମକୁ ମିଳିଲା କେମନ୍ତେ ॥ ୬୬
ଲାଲାଟେନ୍ଦୁ କବି ୨୦୨୦୦୩୨୮

କେହି ଜଣେ

ସତରେ ଯଦି କେହି ଜଣେ
କରୁଛି ସବୁ ବଡପଣେ ॥ ୬୭
ତୁମର ସବୁ ସେ କରିବ
ଖାଇଛି ଧାର ଶୁଝୁ ଥିବ ॥ ୬୮
ସେ ଅଛି ଖଟି ମରିବାକୁ
ତୁମେ ଥା ମଜା କରିବାକୁ ॥ ୬୯

ପାଟିରେ ଚୁଣ୍ଟି ଦବ ସେହି,
ତୁମେ ନାଚିବ ଥେଇ ଥେଇ ॥ ୭୦
ମୁଁ ତାକୁ ଧାର ଦେଇ ନାହିଁ,
ମୋ କାମ ନ କରିବ ଭାଇ ॥ ୭୧
ଏତେ ସୁନ୍ଦର ବୁଦ୍ଧି କାହିଁ
ମଥାରେ ମୋର ଥିଲା ନାହିଁ ॥ ୭୨

ଯେବେ ଏ ଦିବ୍ୟ ବୁଦ୍ଧିମାନ
ସୃଜି ବାଣ୍ଟିଲେ ଭଗବାନ ॥ ୭୩
ଜାଣିଲି ନାହିଁ ମୁଁ କେମନ୍ତି,
ନିଶ୍ଚେ ମୁଁ ଅତି ମୂଢମତି ॥ ୭୪
ଏବେ ଏ ସବୁ ପେଞ୍ଚପାଞ୍ଚ
ବାନ୍ଧି ରଖିବି ମାରି ଖାଞ୍ଚ ॥ ୭୫
ଆର ଜନମେ ଧାର ଦେବି
ମୁଁ ବି ମାଗଣା ଖଟାଇବି ॥ ୭୬
ବୁଦ୍ଧିର ମଞ୍ଜି ପୋତି ପୋତି
ପ୍ରଭୁଙ୍କୁ ଖଟାଇବି ଗୋଟି ॥ ୭୭
ଆଜ୍ଞାକୁ ହେବେ ଆବିର୍ଭାବ,
ଆହା କି ଦିବ୍ୟ ଭକ୍ତିଭାବ ॥ ୭୮
ଲାଲାଟେନ୍ଦୁ କବି ୨୦୨୦୦୪୨୨

ଫଳଭୋଗ
କରି କରାଉ ଥିବ ସେହି,
ଫଳ ଭୋଗିବ ଆନ କେହି ୭୯
ଅତି ଅଦ୍ଭୁତ ଏହି କଥା
ଏ ଭାରି ଅନ୍ୟାୟ ବ୍ୟବସ୍ଥା । ୮୦
ଯେ କର୍ମ ତୁମେ କରି ନାହିଁ
ତା ଫଳ ଭୋଗିବା ଅନ୍ୟାୟ । ୮୧
ଈଶ୍ୱର ଯେବେ ନ୍ୟାୟବନ୍ତ
ସେ ଫଳ ଯାଚିବେ କେମନ୍ତ ? ୮୨
ଯଦି ଯାଚିବେ ବାହୁବଳେ
ଲଢି ମରି ଯା ରଣସ୍ଥଳେ । ୮୩
ଯାବତ ଦେହେ ଥିବ ରକ୍ତ

ବିରୋଧ କରିବ ସଶକ୍ତ । ୮୪
ଆରମ୍ଭ କଲା ମାତ୍ରେ ଛଳ
ଶୋଦିବ ପ୍ରଭୁଙ୍କୁ ପ୍ରବଳ - ୮୫
କର୍ମ ଯେ କରେ ଓ କରାଏ,
ଫଳ ସେ ଘେନୁ, କିସ ଯାଏ । ୮୬
ମୁଁ ଯେଣୁ କିଛି କରୁ ନାହିଁ,
ଫଳ ଘେନିବି କିସ ପାଇଁ ? ୮୭

ଧନୀର ପ୍ରଭୁ
ଧନିକ ଲାଗି ନାରାୟଣ
ଟଙ୍କାର ଉଷ୍ଣପ୍ରସ୍ରବଣ । ୮୮
ଟଙ୍କା ତ ଟଙ୍କା ପାୱାର୍ ପୁଣି
ଦିଅନ୍ତି ସହସ୍ରକେ ଗୁଣି । ୮୯
କଳାବଜାରୀ ଦାରୀ ନାରୀ
ଟଙ୍କା ଫିଙ୍ଗିଲେ ଦୋଷ ପାରି ।୯୦
ଆରକ୍ଷୀ ରାଜକର୍ମୀଚୟ
ପାୱାର୍ ସମକ୍ଷେ ପ୍ରାଣଭୟ । ୯୧

କହନ୍ତୁ ଭାଷା ଦେବୋପମ,
ପାୱାର୍ ନିକଟେ ନମୋ ନମଃ ।୯୨
ଲାଲାଟେନ୍ଦୁ କବି ୨୦୨୧୦୫୧୧୨୨୦୦

ରକ୍ତଲେହୀ
୨୧୨ ୧୧୨ ୧୨୧
ରାଷ୍ଟ୍ରତାରଣ ଆଶ ଦେଇ

ଆସିବେ କିଛି ରକ୍ତଲେହୀ । ୯୩
ମ୍ଲେଚ୍ଛ ଦୁର୍ଦ୍ଧର ସାଜି ସାଧୁ
କେହି ବା ନର ଦେଶମଧ୍ୟୁ । ୯୪
ପାଇବା କ୍ଷଣି ରାଜପାଟ,
ଲେଖିବେ ପ୍ରତିଷିଦ୍ଧ ପାଠ । ୯୫
ଦେଶପୀରତି ଗାନ ଗାଇ
ଚାଲିବେ ଦ୍ୱିଷତା ବଢାଇ । ୯୬
ଚିହ୍ନି ଏ ଭଳି ଦୁଷ୍ଟବୁଦ୍ଧି
ପୃଷ୍ଠତଃ କିଛି ଦେବ ଖୁନ୍ଦି । ୯୭
ବାଣୀପୁତ୍ର ୨୦୨୧୦୬୨୦୧୧୦୪

ଆଣ୍ଠେଇଲେ କା ପାଦତଳେ
ପାପ ସକଳ ଭୂମଣ୍ଡଳେ ୯୮
ତିଳେ ନ ଯିବ ଧୋଇ ଧାଇ
ଚାଲିଛୁ ନିଜକୁ ଠକାଇ । ୯୯

ଏବେ ତ ଆନେ ସେବା କର
ପାପ ଖଣ୍ଡିବ କିଛି ତୋର । 100

## ଅଧିକ ବକ୍ତବ୍ୟ

ପ୍ରଭୁଙ୍କ ପୟର
ପ୍ରଭୁପୟର କି ମହୀରୁହ ଚେର?

ତହିଁ ଜଳ ଦେଲେ   ଶୋଷିବ ଶରୀର !
ସେଠି କି ଚାଲିଛି   ଅସ୍ମୋସିସ୍ ପ୍ରକ୍ରିୟା?
ସିଧା ଭେଦି ଯିବ   ଫ୍ଲାଇଂ କିସ୍ ଭଳିଆ?
VP - ୨୦୨୧୦୮୨୨୦୯୪୫

**ସର୍ବଘଟେ ନାରାୟଣ**

ସର୍ବଘଟେ   ନାରାୟଣ ଥାଇ
ଦରିଦ୍ରକୁ   ଦାନା ଜୁଟୁ ନାହିଁ. । ୧
କି ପାଇବେ  ଦୀନହୀନ ପିଲେ
ନାରାୟଣ   ଥିଲେ କି ନ ଥିଲେ ।   ୨
କେ ଜାଣେ ସେ   ଅଛନ୍ତି କି ନାହିଁ,
ଦେଖିଛ କେ   ଦେବ କି ଦେଖାଇ ?   ୩
ବାଣୀପୁତ୍ର   ୨୦୨୧୦୫୧୩୨୧୦୨

**ସବୁ ସେ କରି ଦେବ**

କରି ସେ କରାଏ ସବୁ
କରିବ ତୁମର,
ଧାର ଖାଇ ବୁଡାଇଛି,
ଶୁଝିବ ଏଥର ॥ ୧

ଆରାମରେ ଶୋଇଥାଅ
ଖଟିଆ ବିଛାଇ,
ପାଟିରେ ତୁମର ଦାନା
ଦେବ ସେ ତୁଣ୍ଡାଇ ॥

ତୁମରି ଗୁଲାମି ପାଇଁ
                ନେଇଥିଲା ଠିକା,
ଲାଉ କରି ବୁଲାଇବ
                ପିଠିରେ ଅବିକା ॥ ୩
ଚୁଚୁମା ବୋତଲ ଦେବ
                ପାଟିରେ ତୁମର;
ହଗି ଦିଅ ତା ଜଙ୍ଘରେ,
                ସେ ତୁମ ନୌକର ॥ ୪
ବାଣୀପୁତ୍ର ଲଲାଟେନ୍ଦୁ କବି